# ଆମ ଲୋକ ନାଚ

( ପ୍ରଥମ ଭାଗ )

ଲେଖକ :

ଶ୍ରୀ ଭଗୀରଥି ନେପାକ

ପ୍ରକାଶକ :



କୋଣାର୍କ ପବ୍ଲିଶର୍ସ

ବିନୋଦବିହାରୀ, କଟକ-୨

# ସୂଚୀ






**ଆମ ଲୋକ ନାଚ (ପ୍ରଥମ ଖଣ୍ଡ)**

ଲେଖକ : **ଶ୍ରୀ ଭଗୀରଥି ନେପାକ**

ପ୍ରକାଶକ : ଚନ୍ଦ୍ରଶେଖର ପାଣ୍ଡ

**କୋଣାର୍କ ପବ୍ଲିଶର୍ସ**
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ : ୧୯୮୭

ମୁଦ୍ରଣ : **କୋଣାର୍କ ପ୍ରିଣ୍ଟର୍ସ**
ଖଟବିନ ସାହି, କଟକ-୮

ମୂଲ୍ୟ : ୨-୪୦
( ଦୁଇଟଙ୍କା ଚାଳିଶ ପଇସା ମାତ୍ର )

# ମୁଖବନ୍ଧ

ଲୋକ ସଂସ୍କୃତି କହିଲେ, ସାଧାରଣ ଲୋକଙ୍କର ସଂସ୍କୃତିକୁ ବୁଝାଇଥାଏ । ସଂସ୍କୃତି କହିଲେ, ସାହିତ୍ୟ, ସଂଗୀତ, କଳା, ଧର୍ମ ଆଦି ସବୁ ଜିନିଷକୁ ବୁଝାଏ ।

ଓଡ଼ିଶା ଏକ ବଡ଼ ଦେଶ । ଏଇଠି ବହୁ ଜାତିର, ବହୁ ଧର୍ମର, ବହୁ ଭାଷାଭାଷୀ ଲୋକ ରହନ୍ତି । ସମସ୍ତେ ଓଡ଼ିଆ ବୋଲି ପରିଚୟ ଦିଅନ୍ତି ।

ଓଡ଼ିଶାର ପୂର୍ବ ଅଂଚଳ ଅପେକ୍ଷା ପଶ୍ଚିମ ଅଂଚଳରେ ଆଦିବାସୀମାନେ ବହୁ ସଂଖ୍ୟାରେ ରହନ୍ତି । ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି ଆଦିବାସୀମାନଙ୍କ ଦ୍ୱାରା ପ୍ରଭାବିତ ।

ଓଡ଼ିଶା ଲୋକ ସଂସ୍କୃତିର ଗନ୍ତାଘର । ପଶ୍ଚିମ ଓଡ଼ିଶାର ଜୀବନଧାରା ସଙ୍ଗେ ଏ ସଂସ୍କୃତି ଜଡ଼ିତ ରହିଛି । ପଶ୍ଚିମ ଓଡ଼ିଶାର ଲୋକ ଜୀବନରେ ଆଦିବାସୀ ପ୍ରଭାବ ଅଧିକ । ନାଚରେ, ଗୀତରେ, ପୂଜାପାଠରେ ବି ସେହି ଆଦିବାସୀ ଜୀବନର ଆଦିମ ଚିନ୍ତାଧାରା ଦେଖିବାକୁ ମିଳେ ।

ଲୋକ ସଂସ୍କୃତି ପୃଥିବୀର ସବୁଠି ସମାନ । ଏହାର ଆରମ୍ଭ ଓ ବିସ୍ତାରର ମୂଳକଥା ଏକ । ଏହି ଲୋକ ସଂସ୍କୃତି ନୀତି ନିୟମର ଧାର ଧାରେ ନାହିଁ । ଜୀବନର ସରଳ, ସହଜ, ସୁନ୍ଦର ଦିଗକୁ ହିଁ ରୂପ ଦିଏ ।

ଏ ବହିରେ ପଶ୍ଚିମ ଓଡ଼ିଶାର କେତୋଟି 'ଲୋକନାଚ' ଉପରେ ଆଲୋଚନା କରାଯାଇଛି । ପଶ୍ଚିମ ଓଡ଼ିଶାର ଅଜଣା ଅଚିହ୍ନା ଗାଁମାନଙ୍କରେ ରହୁଥିବା ସରଳ ଅଶିକ୍ଷିତ ଲୋକମାନେ ଯେଉଁ ଧରଣର ନାଚ-ନାଚ, ଗୀତ ଗାଇ ଜୀବନକୁ ସରସ କରିଥାନ୍ତି ସେହି ନାଚଗୀତ ହିଁ ଲେଖା ଯାଇଛି ।

ଭଗୀରଥି ନେପାକ, ଲେଖକ

# ଚଢ଼େଇଆ ନାଚ

ଓଡ଼ିଶାର ଗାଁମାନଙ୍କରେ ଚଇତ୍ର ମାସ ପରେ ଚଢ଼େଇଆ ନାଚ ଦେଖାଯାଏ ।

ଚଢ଼େଇଆ ନାଚ ଓଡ଼ିଶାର ଶବରମାନଙ୍କର ନାଚ । ଶବରମାନେ ରହୁଥିବା ଗାଁ ଗହଳରେ ଚଢ଼େଇଆ ନାଚ ଜମି ଉଠେ । ଏହାର ମୁଖ୍ୟ ନାୟକ ଶବର ।



ଆଗେ ଜଣେ ମାତ୍ର ଶବର ଚଢ଼େଇଆ ନାଚ ନାଚୁଥିଲା । ସେ କେବଳ ଗୀତ ଗାଇ ଗାଇ ନାଚୁଥିଲା । ଏବେ ଚଢ଼େଇଆ ନାଚରେ ଚଢ଼େଇଆଣୀ, ଗୁଣିଆ, ଦେହେରୀ, ଶିବ ଆଦି ଦେଖିବାକୁ ମିଳୁଛନ୍ତି ।

ଶବରମାନେ ଆଦିବାସୀ । ସେମାନେ ଏ ଦେଶର ଆଦିମ ଅଧିବାସୀ । କେବଳ ଆମ ଦେଶ ଓଡ଼ିଶାର ନୁହେଁ ଭାରତର ଏମାନେ ଆଦିମ ଅଧିବାସୀ । ଆମର ପୋଥି ପୁରାଣରେ ଏମାନଙ୍କ ବିଷୟ ଲେଖା ହୋଇଛି ।

ଶବରମାନେ ବଣ ଜଙ୍ଗଲରେ ରହନ୍ତି । ସହରଠାରୁ ଦୂରେଇ ରହନ୍ତି । ଛୋଟ ଛୋଟ କୁଡ଼ିଆଘରେ, ଛୋଟ ଛୋଟ ଗାଁରେ ଏମାନେ ଚଳପ୍ରଚଳ ହୁଅନ୍ତି । ବଣର ଫୁଲ ଫଳ ଆଣି, ପଶୁପକ୍ଷୀ ଶିକାର କରି ପେଟ ପୋଷନ୍ତି । ଏମାନଙ୍କ କୃଷିକର୍ମ ପ୍ରାୟ ନ ଥାଏ । ଶବରମାନଙ୍କୁ ବଣ ଜଙ୍ଗଲର ରଜା କୁହାଯାଏ ।

ପକ୍ଷୀ ଧରିବା, ପକ୍ଷୀ ଶିକାର କରିବା ଏମାନଙ୍କ ଜୀବନର ସଉକ ନୁହେଁ । ଏହା ଏମାନଙ୍କର ପେଷା । ପକ୍ଷୀ ବିକ୍ରି, ପକ୍ଷୀ ମାଂସ ବିକ୍ରି ଏମାନେ ପୋଷିହୁଅନ୍ତି ।

ଏହି ଶବର ଜାତିର ଲୋକେ ଚଢ଼େଇଆ ନାଚ କରନ୍ତି । ଏବେ ଶବରମାନଙ୍କଠାରୁ ଶିଖି ଅନ୍ୟମାନେ ମଧ୍ୟ ଏ ନାଚ କରୁଛନ୍ତି ।



## ଚଢ଼େଇଆ ନାଚର କାହାଣୀ

ଚଢ଼େଇଆ ନାଚର କାହାଣୀ ଅଛି । ନାଚ ଭିତରେ ଏ କାହାଣୀ ଫୁଟାଇ ଦିଆଯାଏ ।

କାହାଣୀଟି ହେଲା, ଥରେ ଶବରଟିଏ ଜାଲ ଓ ଅଠାକାଠି ନେଇ ପକ୍ଷୀ ଶିକାର ପାଇଁ ବାହାରିଲା ପାଖ ବଣରେ ଶିକାର ନ ପାଇ ଅଗନା ଅଗନ ବନ ଭିତରକୁ ପଶିଗଲା ।

ସେ ଯେଉଁ ଅଗନା ଅଗନ ବଣ ଭିତରକୁ ପଶିଲା, ତାହା ଥିଲା ଶିବ ଦେବତାଙ୍କ ବନ । ସେଠାରେ ଅନେକ ଜୀବଜନ୍ତୁ ଥିଲେ । ଶିବ ସେମାନଙ୍କୁ ତାଙ୍କ ବନରେ ନିରାପଦରେ ରହିବାକୁ କହିଥିଲେ । ଶିବଙ୍କ ଦୟାରୁ ସମସ୍ତେ ଖୁସିରେ ରହୁଥିଲେ । ଶବର ଏତେ କଥା ଜାଣି ନ ଥିଲା । ସେ ଗଛ ଡାଳରେ ପକ୍ଷୀ-ମାନେ ଆରାମରେ ବସିଥିବା ଦେଖି ଖୁସି ହେଲା । ଭାବିଲା, ଏତେବେଳକେ ଭାଗ୍ୟ ଉଇଁଲା । ଏଥିରୁ ଗୁଡ଼ିଏ ପକ୍ଷୀ ଧରା ପଡ଼ିବେ । ପକ୍ଷୀ ବିକିବା ସଙ୍ଗେ ମାଉଁସ ବିକା ବି ହେବ । ଖୁବ୍ ରୋଜଗାର ହେବ । ସାରା ପରିବାର ପକ୍ଷୀ ମାଉଁସ ଖାଇବେ । ଏହା ଭାବି ସେ ଗଛ ପାଖକୁ ପାଖେଇ ଗଲା ।

ତଥାପି ପକ୍ଷୀମାନେ ଆରାମରେ ବସିଥିଲେ । ସେମାନେ ଶବରକୁ ଦେଖି ଡ଼ରିଲେ ନାହିଁ । ଶବର କାବା ହେଲା । କିନ୍ତୁ ସେ ଅଟକି ନ ଯାଇ ପକ୍ଷୀ ଧରିଲା ।

ଠିକ୍ ଏତିକିବେଳେ ଶିବଙ୍କ କୋପ ଶବର ଉପରେ ପଡ଼ିଲା । ସେ ତାଙ୍କ ବାହାନ ସାପକୁ ଶବର ପାଖକୁ ପଠାଇଲେ । ଶିବଙ୍କ ଆଜ୍ଞା ପାଇ ସାପ ଧାଇଁ ଆସିଲା । ସେ ସଙ୍ଗେ ସଙ୍ଗେ ଶବର ପାଦକୁ ଆଘାତ କଲା । ସାପ ବିଷରେ ଜରହୋଇ ଶବର ତଳେ ପଡ଼ି ଛଟପଟ ହେଲା । ତା ଦେହ ନେଳି ପଡ଼ିଗଲା । କିଛି ସମୟ ପରେ ଶବର ମରିଗଲା ।

ଘରୁ ବାହାରିଲାବେଳେ ଶବର ତାର ସ୍ତ୍ରୀକୁ କହି ଆସିଥିଲା, ସହଳ ଫେରିବ । ଚାହୁଁ ଚାହୁଁ ଫେରିବା ବେଳ ଗଡ଼ିଗଲା । ବେଳ ତଳକୁ ଖସିଲା । ସ୍ୱାମୀର ବାଟ ଚାହିଁ ଚାହିଁ ଶବରୁଣୀର ଆଖିର ପାଣି ମଲା । ସେ ଆଉ ଅପେକ୍ଷା କରିପାରିଲା ନାହିଁ ।

ସ୍ୱାମୀର ନାଁ ଧରି ବଡ଼ ପାଟିରେ ଡ଼ାକି ଡ଼ାକି ସେ ବଣ ଭିତରକୁ ଧାଇଁଲା । ବାଟରେ ଯାହାକୁ ଭେଟିଲା, ସ୍ୱାମୀର କଥା ପଚାରିଲା । କେହି କିଛି ଖବର ଦେଇ ପାରିଲେ ନାହିଁ ।

ଶବରୁଣୀ ତା ସ୍ୱାମୀକୁ ଖୋଜି ଖୋଜି ଆସି ଘଟଣା ଜାଗାରେ ପହଞ୍ଚିଲା । ଦେଖିଲା, ସ୍ୱାମୀ ତାର ଚିତ୍‌ପାତ୍ ହୋଇ ପଡ଼ିଛି । ତା ମୁହଁରୁ ଲାଳ ଗଡ଼ି ଭୂଇଁ ଭିଜି ଯାଇଛି ।

ଶବରୁଣୀ ବାହୁନି ବାହୁନି କାନ୍ଦିଲା । ତା' କାନ୍ଦରେ ଖଣ୍ଡମଣ୍ଡଳ ପୂରି ଉଠିଲା । ତା' କାନ୍ଦ ଶୁଣି ଦୁଇଜଣ ଶବର ଗୁଣିଆ ପାଖକୁ ଆସିଲେ । ଶବରୁଣୀ ସେ ଦୁହିଁଙ୍କି ଚାହିଁଥିଲା । ନେହୁରା ହେଲା, ସ୍ୱାମୀକୁ ମୋର ଭଲ କର । ମୋତେ ଦୟା କର ।

ଗୁଣିଆ ଦୁ'ଜଣ ଆଣ୍ଠେଇ ବସିଲେ । ସେମାନେ ଶବରୁଣୀକୁ ବୁଝାଇ ତୁନି କଲେ । ତା'ପରେ ଫୁଙ୍କାଝଡ଼ା ଆରମ୍ଭ କରିଦେଲେ । ଯେତେ ମନ୍ତ୍ର ଜାଣିଥିଲେ, ସବୁ ପଢ଼ି ଶେଷ କଲେ । ଯେତେ ଉପାୟ ଜାଣିଥିଲେ ସବୁ କରି ନିରାଶ ହେଲେ । ତାପରେ ନିରାଶ ହୋଇ ଫେରିଗଲେ ।

ଶବରୁଣୀ ପୁଣି ରାହା ଧରି କାନ୍ଦିବାକୁ ଲାଗିଲା । ଏହାପରେ ଆଦିବାସୀ ପୁରୋହିତ ଜଣେ ଆସିଲେ । ସେ ଶବରୁଣୀ ମୁହଁରୁ ସବୁକଥା ମନଦେଇ ଶୁଣିଲେ । କହିଲେ, ଝିଅ ! କନ୍ଦାକଟା କଲେ ଲାଭ ନାହିଁ । ଶିବଙ୍କୁ ଡାକ । ତାଙ୍କୁ ଗୁହାରିକର । ସେ ଦୟାକଲେ ତୋର ଦୁଃଖ ଦୂର ହେବ । ସେ ଚାହିଁଲେ ତୋ ସ୍ୱାମୀକୁ ସାପ ବିଷରୁ ଭଲ କରିଦେବେ । ଏହା କହି ସେ ଚାଲିଗଲେ ।

ଶବରୁଣୀ ପୁରୋହିତଙ୍କ (ଦେହେରୀ) କଥା ଶୁଣିଲା । ସେ ଏକ ମନ ଧ୍ୟାନରେ ଶିବ ଦେବତାଙ୍କୁ ଡ଼ାକିଲା । କହିଲା,

ତମ ଛଡ଼ା ଗତ ନାହିଁ । ଦୁନିଆ ଚଳାଉଛ । ମୋ ସ୍ୱାମୀକୁ ବଞ୍ଚାଅ ।

ଶିବ ଶବରୁଣୀ ଡାକ ଶୁଣିଲେ । ସେ ଆସି ହାଜର ହେଲେ । ମୁଣ୍ଡରେ ଜଟା, ବେକରେ ନାଗସାପ, ଦେହରେ ବାଘଛାଲ । କହିଲେ, ତୋ ସ୍ୱାମୀ ମୋତେ ଆଶ୍ରାକରି ରହିଥିବା ପକ୍ଷୀଙ୍କୁ ମାରିଲା । ତେଣୁ ତାକୁ ମୋର ବାହନ ସାପ କାମୁଡ଼ିଲା । ତୋର ଗୁହାରି ଶୁଣି ଦୟା କଲି । ତୋ ସ୍ୱାମୀ ଭଲ ହେବ । ତାକୁ କହିବୁ, ଏ ବନରେ ଆଉ ଶିକାର କରିବ ନାହିଁ । ଏହା କହି ଶିବ ଉଭେଇ ଗଲେ ।

ଏହାପରେ ବଡ଼େଇଆ ଜୀବନ ପାଇଲା । ବଡ଼େଇଆ ଓ ତାର ସ୍ତ୍ରୀ ଶିବଙ୍କୁ ଜୁହାର ହେଲେ ।

× × ×

ଏହି କାହାଣୀକୁ ବଡ଼େଇଆ ନାଚରେ ରୂପ ଦିଆଯାଏ । ଗୀତରେ, ନାଚରେ, ଅଭିନୟରେ ପକ୍ଷୀ ଶିକାର ଠାରୁ ଶବରର ଜୀବନ ଲାଭ ଯାଏ ସବୁ କଥା ଦେଖାଇ ଦିଆଯାଏ ।

ଆଗେ ଏ ନାଚ ବଡ଼େଇଆ ଏକା ଏକା କରୁଥିଲା । ଏଥିରେ ଶିବ ମହିମା କଥା କୁହାଯିବାରୁ ଶିବ ପୂଜକମାନେ ଯୋଗ ଦେଲେ । ଏ ନାଚକୁ ଆହୁରି ସରସ ସୁନ୍ଦର କରିବା ପାଇଁ ଏଥିରେ ଢୋଲ, ମହୁରୀ ବାଜିଲା । ଶବରୁଣୀ, ଗୁଣିଆ, ଦେହେରୀ, ଶିବ ଆଦି ଚରିତ୍ରମାନେ ଆସିଲେ । ଏ ନାଚର ବିଷୟ ଭିନେ ଭିନେ ଜାଗାରେ ଅଲଗା ଅଲଗା ରୂପ ନେଲା । କିନ୍ତୁ ଶବରର ପକ୍ଷୀ ଶିକାର ଓ ଶିବଙ୍କ ଦୟାରୁ ଜୀବନ ଲାଭକଥା ସାରକଥା ହୋଇ ରହିଲା ।

## ଚଢ଼େଇଆର ବେଶ

ଶବର ଚଢ଼େଇଆ ଲେଙ୍ଗୁଟି ପିନ୍ଧି ନାଚେ । ତା' ଦେହରେ ବନର ଫୁଲ, ଫଳ ଓ ପତ୍ର ଡାଳ ଥାଏ । ସେ ବୀର ଠାଣିରେ ନାଚେ ।

ବେଳେ ବେଳେ ଚଢ଼େଇଆ ପାଗ ଭିଡ଼ି ବାହାରେ । ଗୋଟିଏ ହାତରେ ରୁମାଲ ଧରିଥାଏ । ଅନ୍ୟ ହାତରେ ଅଠାକାଠି ଥାଏ । ସେ ଶିବଙ୍କର ତାଣ୍ଡବ ନାଚ ପରି ନାଚେ ।



ଫରମାସୀ ଚଢ଼େଇଆ ନାଚରେ ବନ୍ଧୁ ଚଢ଼େଇଆ ଏକାଠି ନାଚିବା ଦେଖାଯାଏ । ଢୋଲର ତାଳ ସଙ୍ଗେ ତାଳ ମିଶାଇ ସେମାନେ ଘିରିଘିରି ହୋଇ ବୁଲି ନାଚଥାନ୍ତି ।

ଏ ନାଚ ଦେଖଣାହାରୀଙ୍କୁ ଖୁବ୍ ଆନନ୍ଦ ଦିଏ ।

ଫରମାସୀ ଚଢ଼େଇଆ ନାଚରେ ଚଢ଼େଇଆ ଭା' ଅଣ୍ଟାରେ 'ନବରଙ୍ଗିଆ କଙ୍ଗିଆ' ପିନ୍ଧିଥାଏ । ଅଲଗା ଅଲଗା ରଙ୍ଗର କନାରେ ତିଆରି ଏହା ଏକ ବିଚିତ୍ର କଙ୍ଗିଆ । କଙ୍ଗିଆ ଉପରେ ଘାଗୁଡ଼ିମାଳ, ମୁଣ୍ଡରେ ପାଗ, ବେକରେ ହାର ପିନ୍ଧିଥାଏ । ହାତରେ ବାଉଁଶ ବାଡ଼ି, ଅଠାକାଠି, ପତର ଛାଟି, ଚଢ଼େଇଆ ଖାଲେଇ ଧରି ରୁମାଲ ହଲାଇ ହଲାଇ ନାଚେ ।

ନିଜର ପରିଚୟ ଦେଇ ଗାଏ—

"ଦେଖ ଦେଖ ଆହେ ଭାଇ
ଚଢ଼େଇଆ ଆସୁଛି କି ବେଶ ହୋଇ
ଚଢ଼େଇ ମାରିବା ପାଇଁ ...ବାହା ବାହାତ ।"

ବେଳେ ବେଳେ 'ଦଣ୍ଡନାଟ'ରେ ମଧ୍ୟ ଚଢ଼େଇଆ ନାଚ ଦେଖିବାକୁ ମିଳେ ।



## ଚଢ଼େଇଆ ଚଢ଼େଇଆଣୀ ନାଚ

ଓଡ଼ିଶାର ସୋନପୁର, କଳାହାଣ୍ଡି(?) ବଉଦ, ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼, ଢେଙ୍କାନାଳ ଆଦି ଅଞ୍ଚଳରେ 'ଚଢ଼େଇଆ ଚଢ଼େଇଆଣୀ' ନାଚ ଦେଖାଯାଏ । ଏହା ପ୍ରସିଦ୍ଧ ଦଣ୍ଡନାଟ'ର ଏକ ଅଂଶ ଭାବରେ ଦେଖାଦିଏ । କିନ୍ତୁ ପୁରୀ, ଗଞ୍ଜାମ, ବାଲେଶ୍ୱର ଆଦି ଅଞ୍ଚଳରେ ଏ ନାଚ ଅଲଗା ଭାବରେ କରାଯାଏ ।

ସାଧାରଣତଃ ଚଇତ୍ର ମାସର ଶେଷ ଆଡ଼କୁ ଗାଁମାନଙ୍କରେ ଏହି ନାଚ ଆରମ୍ଭ ହୋଇଯାଏ ।

'ଚଢ଼େଇଆ ଚଢ଼େଇଆଣୀ' ନାଚରେ ଆଦିବାସୀମାନଙ୍କ ଜୀବନର କଥା ଦେଖିବାକୁ ମିଳେ । ଆଦିବାସୀ ଶବରମାନେ ଏ ନାଚ କରିବାକୁ ଗାଁ ଗାଁ ବୁଲନ୍ତି ।

ଶବରମାନେ ବଣୁଆ ଲୋକ । ଏମାନେ ବଣ ଜଙ୍ଗଲ ଭିତରେ ରହନ୍ତି । ବଣର ପଶୁପକ୍ଷୀ ଶିକାର କରି ଓ ଫଳମୂଳ ଖାଇ ବଂଚନ୍ତି । ଚଢ଼େଇ ଶିକାର କରିବାପାଇଁ ଅଠାକାଠି ନେଇ ବାହାରି ପଡ଼ନ୍ତି । ଗଛ ଡାଳରେ ଫାଶ ପକାଇ, ଜାଲ ବିଛାଇ ଚଢ଼େଇ ଧରନ୍ତି । ଧରି ଆଣିଥିବା ଚଢ଼େଇର ମାଂସ ଖାଇ ଆରାମରେ ରହନ୍ତି । ଅଧିକା ଚଢ଼େଇ ଥିଲେ ଗାଁ ଗହଳର ଲୋକଙ୍କୁ ବିକି ଦିଅନ୍ତି । ଯାହା ମିଳେ, ତହିଁରେ ଲୁଣ, ଚାଉଳ ଖାଇ ଚଳିଯାଏ ।

ଚଢ଼େଇଆ ଚଢ଼େଇ ଶିକାରପାଇଁ ବଣ ଭିତରକୁ ଚାଲିଯିବା ପରେ, ଚଢ଼େଇଆଣୀ ଘର କାମରେ ଲାଗି ପଡ଼େ । ତାପରେ ସେ ତାର ସ୍ୱାମୀର ଅପେକ୍ଷାରେ ରହେ । ଚଢ଼େଇଆ ଚଢ଼େଇ ଧରି ଘରକୁ ଫେରୁଥିବା ଦେଖିଲେ, ଚଢ଼େଇଆଣୀ ମୁହଁରେ ହସର ଫୁଲ ଫୁଟେ । ସେ ଗୁଣୁ ଗୁଣୁ ହୋଇ ଗୀତ ଗାଏ । ଦିନଟି ହସ ଖୁସିରେ କଟିଯାଏ ।

କିନ୍ତୁ ସମସ୍ତଙ୍କର ସବୁଦିନ ହସ ଖୁସିରେ କଟେ ନାହିଁ । ଦିନ ପଛକୁ ରାତି ପରି, ସୁଖ ପଛକୁ ଦୁଃଖ ଥାଏ ।

ଦିନେ ଦିନେ ଚଢ଼େଇଆ ଯେତେ ଯାହା କଲେ ବି ଚଢ଼େଇ ଧରିପାରେ ନାହିଁ । ଚଢ଼େଇ ପାଇବା ଆଶାରେ ସେ ବହୁ ସମୟ ଯାଏ ବଣ ଭିତରେ ଘୁରିବୁଲେ । ଯେତେବେଳେ ବେଳ ଗଡ଼ିଯାଏ ।

ଚଢ଼େଇଆ ଠିକ୍ ସମୟରେ ଘରକୁ ଫେରି ନ ଆସିଲେ ଚଢ଼େଇଆଣୀର ମନ ଉଚ୍ଛନ ହୁଏ । ଘର ମୁହଁରେ ବସି ବସି ଚଢ଼େଇଆଣୀ ତା ସ୍ୱାମୀର ଫେରିବା ବାଟକୁ ଅନାଇ ରହେ । ପତ୍ରଟିଏ ପଡ଼ିଲେ "ହେଇଟି ଆସୁଛନ୍ତି" କହି ଖଣ୍ଡେ ବାଟକୁ ଧାଇ ଯାଏ । ଅନେଇ ଅନେଇ ବେଳ ଗଡ଼ିଗଲେ, ସ୍ୱାମୀର ନାଁ ଧରି ବଡ଼ ପାଟିରେ ଡାକ ଛାଡ଼େ । ଜଣା ଅଜଣା ଯାହାକୁ ଦେଖେ, ସ୍ୱାମୀର କଥା ପଚାରେ । ଖବର ନ ପାଇଲେ ମୁହଁ ଶୁଖାଇ ବସି ପଡ଼େ । ତାପରେ ଆକାଶ ପାତାଳ ଭାବି ହୁଏ ।

ଆତୁର ଉତ୍ସୁର ହେଲେ, ସେ ବଣର ବାଘ ଭାଲୁ ନ ମାନି ସ୍ୱାମୀକୁ ତାର ଖୋଜିବ ବୋଲି ଗଭୀର ବଣରେ ପଶିଯାଏ । ବାଟରେ ଦେଖା ହେଲେ ସ୍ୱାମୀ ସ୍ତ୍ରୀ ହସ ହସ ମୁହଁରେ ଘରକୁ ଫେରନ୍ତି ।

ଯେତେ ଯେତେ ଚଢ଼େଇଆ ତାର ସ୍ତ୍ରୀକୁ ଶୀଘ୍ର ଫେରି ଆସିବାକୁ କହି ମଧ୍ୟ ଫେରି ପାରେ ନାହିଁ । ସେ ବଣର ଜୀବଜନ୍ତୁଙ୍କ ହାବୁଡ଼ରେ ପଡ଼ି କ୍ଷତବିକ୍ଷତ ହୁଏ । ରକ୍ତ ଜୁଡ଼ୁବୁଡ଼ୁ ଦେହରେ ଘରକୁ ଫେରେ । ଚଢେଇଆଣୀ ତାକୁ ନେଇ ସେବା କରେ ।

ଆହୁରି ବି' ଏମିତି ହୁଏ ଯେ, ଚଢ଼େଇଆ ପକ୍ଷୀ ଶିକାର କରୁ କରୁ ସାପ, ବାଘ ଆଦି ହିଂସ୍ରଜନ୍ତୁଙ୍କ ହାବୁଡରେ ପଡ଼ି ପ୍ରାଣ ହରାଏ । ବିଚାରୀ ଚଢ଼େଇଆଣୀର ଦୁଃଖ କହିହେବ ନ ସରେ ।

ଚଢ଼େଇ ଶିକାର ମିଳିଥିଲେ ଚଢ଼େଇଆ ଚଢ଼େଇଆଣୀ ଖୁସିରେ ରହନ୍ତି । ଦୁହେଁ ରସରସିଆ ଗୀତ ଗାଆନ୍ତି । ମନ ହେଲେ

ହାତ ଧରାଧରି ହୋଇ ନାଚନ୍ତି । ନାଚ ଗୀତ ମଝିରେ ମାନ ଅଭିମାନ ଚାଲେ ।

ଚଢ଼େଇଆ ଚଢ଼େଇଆଣୀ ସଂସାରର ନିଖୁଣ ଚିତ୍ର 'ଚଢ଼େଇଆ ଚଢ଼େଇଆଣୀ' ନାଚରେ ଦେଖିବାକୁ ମିଳେ ।



## ଚଢ଼େଇଆ ଚଢ଼େଇଆଣୀ ନାଚ

ନାଚଦଳ ସୁବିଧା ଦେଖି ଯେ କୌଣସି ଗାଁରେ ପହଞ୍ଚି ଯାଆନ୍ତି । ଦଳରେ ଅତି କମ୍‌ରେ ଚାରି ପାଞ୍ଚଜଣ ଥାଆନ୍ତି । ବେଳେ ବେଳେ ଚଢ଼େଇଆର ପରିବାରର ସମସ୍ତେ ଏ ନାଚରେ ଭାଗ ନେଇଥାନ୍ତି । ଚଢ଼େଇଆ ଓ ତାର ସ୍ତ୍ରୀ ନାଚନ୍ତି । ପୁଅ ଝିଅମାନେ ପାଳିଆ ଧରି ବିଭିନ୍ନ ବାଜା ବଜାନ୍ତି ।

ନାଚ ହେବା ପୂର୍ବରୁ ଗାଁ ଦାଣ୍ଡରେ ଢୋଲ ବାଜେ । ବାଜା ଶୁଣି ଗାଁ ଲୋକେ ଜମା ହୁଅନ୍ତି । ପିଲାମାନଙ୍କ ଖୁସି ଦେଖେ କିଏ ? ବୁଢ଼ା ବୁଢ଼ୀମାନେ ବି ଆଗରେ ବସିବା ପାଇଁ ଠେଲାପେଲା ହୁଅନ୍ତି ।

ବାଜା ସଙ୍ଗରେ ତାଳଦେଇ ନାଚ ନାଚ ଚଢ଼େଇଆ ଓ ଚଢ଼େଇଆଣୀ ଜାଗା ଉପରକୁ ଚାଲି ଆସନ୍ତି । ସେମାନେ କିଛି ସମୟ ଧରି ବିଭିନ୍ନ ଢଙ୍ଗରେ ନାଚନ୍ତି ।

ଏହାପରେ ଅସଲ କଥା ଆରମ୍ଭ ହୁଏ ।

ଚଢ଼େଇଆ ଚଢ଼େଇଆଣୀଠାରୁ ବିଦାୟ ନେଇ ଶିକାର କରିବାପାଇଁ ବଣକୁ ବାହାରେ ।

ଚଢ଼େଇଆଣୀ ଗୀତରେ କହେ, ଶୀଘ୍ର ଫେରିବ । ଡେରି କରିବ ନାହିଁଟି ! ମୋ ରାଣ !

ଆଖିରେ ଆଖି ଯୋଖିହୋଇ ରହେ ।

ତାପରେ ଚଢ଼େଇଆ ବିଦାୟ ନେଇ ଚାଲିଯାଏ ।

ପରେ ପରେ ଦେଖାଯାଏ, ଚଢେଇଆକୁ ବିଷାକ୍ତ ସାପ ଚୋଟ ମାରିଛି । ଚଢ଼େଇଆ ଚିତ୍‌ମାଡ଼୍ ହୋଇ ପଡ଼ିଛି । ତାର ଚେତା ନାହିଁ ।

ସଙ୍ଗେ ସଙ୍ଗେ ଦୁଇଜଣ ଗୁଣିଆ କେଲା ଆସନ୍ତି ।

ଗୁଣିଆ କେଲା ମନ୍ତ୍ର ପଢି ଚଢ଼େଇଆକୁ ଫୁଙ୍କା ଝଡ଼ା କରନ୍ତି ।

ଦେଖଣାହାରୀମାନେ ଉଦ୍‌ବେଗ ହୋଇ ଅନାଇ ରହନ୍ତି । ଚଢ଼େଇଆ ଉପରେ ସେମାନଙ୍କର ସ୍ନେହ କୁଢ଼େଇ ହୁଏ । କେହି କେହି କହି ହୁଅନ୍ତି, ଆହା ବିଚାରା !



କିନ୍ତୁ ଗୁଣିଆମାନଙ୍କର ଝଡ଼ାଫୁଙ୍କା ଫସର ଫାଟେ । ସାପ ବିଷରେ ଚଢ଼େଇଆର ଦେହ ନେଳିଆ ଦେଖାଯାଏ । ସେ ମରିଯାଏ ।

ଚଢ଼େଇଆଣୀ ତାର ସ୍ୱାମୀକୁ ଅନେଇ ବସିଥାଏ । ସେ ଆସିବାରେ ଡେରି ହେବା ଦେଖି, ତାକୁ ଖୋଜିବାକୁ ଚାଲିଯାଏ । ବଣ ଭିତରେ ଅନେକ ଖୋଜେ । ଶେଷରେ ସ୍ୱାମୀର ଶବ ପାଖରେ ପହଞ୍ଚେ । ସ୍ୱାମୀର ଅବସ୍ଥା ଦେଖି ତାର ପାଦ ଧରି କାନ୍ଦେ । କାନ୍ଦି କାନ୍ଦି ଗାଏ—

"ପର୍ବତ ଶିଖରେ ଭଙ୍ଗକୁଲ ଲତା
କି ରଙ୍ଗେ ଫୁଟିଛି ଫୁଲ ।
କାହା ସଙ୍ଗେ ମୁହିଁ ଏ ଦିନ ସାରିବି
ଧନ ମୋତେ ଛାଡ଼ିଗଲ ଯେ—
ସାଆନ୍ତ
ମୋତେ କଥା ପଦେ ହେଲେ କହନ୍ତ…"

ଚଢେଇଆଣୀ ସ୍ୱାମୀର ମଲା ଦେହ ପାଖରେ ବସି ଅନେକ ଭାବରେ ବାହୁନି ବାହୁନି କାନ୍ଦେ ।

ଦେଖଣାହାରୀମାନେ ଦୁଃଖରେ ବୁଡ଼ି ଯାଆନ୍ତି । ସେମାନଙ୍କ ଆଖିରୁ ଲୁହ ଝରେ । କେହି କେହି କଇଁ କଇଁ ହୋଇ କାନ୍ଦିବା ଆରମ୍ଭ କରି ଦିଅନ୍ତି ।

ଚଢ଼େଇଆଣୀର ବିପଦ ଦେଖି ତାର ସାଙ୍ଗମାନେ ଆସି ପାଖରେ ହାଜର ହୁଅନ୍ତି । ସେମାନେ ଚଢ଼େଇଆଣୀକୁ ବୁଝାଇ ସୁଝାଇ ଘରକୁ ଫେରାଇ ନିଅନ୍ତି ।

ବଲାଙ୍ଗୀର ଓ ସମ୍ବଲପୁର ଅଞ୍ଚଳରେ ଚଢ଼େଇଆର ମୃତ୍ୟୁ ହୋଇଥାଏ । ଏଥିରେ ବିରହ ଓ ବିଚ୍ଛେଦର କରୁଣ ରସ ଦେଖାଦିଏ ।

× × ×

କିନ୍ତୁ ଓଡ଼ିଶାର ଉପକୂଳ ଅଞ୍ଚଳରେ ଏ ନାଟର ବିଷୟ ବଦଳିଥିବା ଦେଖାଯାଏ ।

ଚଢ଼େଇଆଣୀ ଚଢେଇଆର ମଲା ଦେହକୁ ଧରି କାନ୍ଦୁଥିବା ହେବା ପରେ, ଘଟଣା ଅନ୍ୟ ମୋଡ଼ ଧରେ ।

ଚଢ଼େଇଆଣୀ ତା' ସ୍ୱାମୀର ମଲା ଦେହକୁ ଧରି କାନ୍ଦୁଥିଲା ବେଳେ ସ୍ୱାମୀର ସାନ ଭାଇ ଆସି ସେଠାରେ ପହଞ୍ଚି ଯାଏ ।



ଦିଅର ତାର ସଦ୍ୟ-ବିଧବା ଭାଉଜକୁ ନାନା ପ୍ରକାର କଥା କହି ସାନ୍ତ୍ୱନା ଦିଏ । ତାପରେ ତା' ସଙ୍ଗରେ ନୂଆ କରି ଘର ସଂସାର କରିବାକୁ ପ୍ରସ୍ତାବ ଦିଏ । ସେ ଗାଏ—

"କାହିଁକି ଲୋ କୁନ୍ଦଦନ୍ତୀ ହେଉଛୁ ବାଇ
ମଲାଠାରୁ ଆଉ କି ଆସିବ ଭାଇ ?

ମନ୍ଲା ଯେବେ ଭଲ ହେଲା
ଆମ୍ଭର କଲଙ୍କ ଗଲା
ମୋ କରମେ ଲେଖାଥିଲା
ଲଭିବ ମୁହିଁ ଲୋ······ଇତ୍ୟାଦି ।

ପ୍ରସଙ୍ଗ କ୍ରମେ କୁହାଯାଇ ପାରେ ଯେ, ଶବର କୁଳରେ ବିଧବା ଭାଉଜକୁ ଦିଅର ବିବାହ କରିଥାଏ । ଦିଅର ହିଁ ବିଧବା ଭାଉଜକୁ ବିବାହ କରିବା ପାଇଁ ପ୍ରଥମ ହକଦାର ।

ଏହା ପରେ ଦିଅରର ହାତଧରି ଚଢ଼େଇଆଣୀ ନାଚି ନାଚି ଫେରିଯାଏ । ଚଢ଼େଇଆଣୀ ନୂଆ ମନ ନେଇ ଘରକୁ ଫେରେ । ଏତେବଡ଼ ଘଟଣାର ଏହିପରି ସମାଧାନ ହୁଏ ।

କେବଳ ଶବର ଜାତି ନୁହେଁ, ସବୁ ଆଦିବାସୀ ସମାଜରେ ବିଧବା ଭାଉଜ ଅବିବାହିତ ଦିଅରକୁ ବିବାହ କରିବାର ବିଧି ଅଛି । ଏଣୁ ଏ ପ୍ରକାର କଥାରେ କିଛି ଅନୈସର୍ଗିକ କଥା ରହୁନାହିଁ ।

'ଚଢ଼େଇଆ ଚଢ଼େଇଆଣୀ, ନାଚର ପ୍ରଧାନ ଆକର୍ଷଣ ହେଲା ସେମାନଙ୍କ ରସରସିଆ ଗୀତ ।

ଏମାନେ ଅଣ୍ଟାରେ ଲେଙ୍ଗୁଟି ଖଣ୍ଡେ ପିନ୍ଧିଥାନ୍ତି । ସ୍ତ୍ରୀମାନେ ଅଣ୍ଟା ଓ ଛାତିରେ କନା ବେଢ଼ାଇ ଥାଆନ୍ତି । ବଣୁଆ ଗଛର ଫୁଲ, ଫଳ ଓ ଡାଳ ଏମାନଙ୍କ ଭୂଷଣ । କେହି କେହି ପାଦରେ ଘୁଙ୍ଗୁର ଲଗାଇ ଥାଆନ୍ତି । ବେଶ୍ ମୋଟା ତାଜା ଚେହେରା । ଗଭୀର ଚାହାଣୀ । ଅଧିକ ଚାଲି । ଆଖିରେ ଆଖିଏ ଆଖିଏ କଥା । ଚାଲିଲାବେଳେ, ନାଚିଲାବେଳେ ଧୁମ୍ ଧୁମ୍ କରି ପାଦ ପକାନ୍ତି । ଏମାନଙ୍କୁ ଦେଖିଲେ ଖୁସି ଲାଗେ ।

ଢୋଲ ବାଜା ସଙ୍ଗେ ସଙ୍ଗେ ନାଚର ଆସର ଜମି ଉଠେ । ଦେଖଣାହାରୀଙ୍କ ଖୁସି କରିବା ପାଇଁ ଚଢ଼େଇଆ ଚଢ଼େଇଆଣୀ ଢୋଲ ବାଜାର ତାଳେ ତାଳେ ନାଚ ନାଚ ବାହାରି ପଡ଼ନ୍ତି ।

ଢୋଲ ବାଜା ସଙ୍ଗେ ବେଳେ ବେଳେ ମହୁରୀ ବି ବାଜଥାଏ । ଢୋଲ ଓ ମହୁରୀ ବାହାକୁ କଣା ହୋଇ ଆସେ ନାହିଁ । ତାକୁ ତାଙ୍କର ଲୋକମାନେ ହିଁ ତିଆରି କରିଥାନ୍ତି ।

ଢୁଲିଆ (ଢୋଲ ବାଦକ) ଢୋଲ ବଜାଇ ଖଣ୍ଡମଣ୍ଡଳ ଘୁଲ୍‌କାଇ ଦିଏ । ପାଞ୍ଚ କୋଶ ଦୂରକୁ ସେ ଶବଦ ଶୁଭେ । ଢୋଲ ବାଜା ଶୁଣିଲେ ସେହି ଗାଁର ଲୋକମାନଙ୍କ ସଙ୍ଗରେ ଅନ୍ୟ ଗାଁର ଲୋକମାନେ ବି ଆସି ଜମି ଯାଆନ୍ତି ।

ନାଚ କ୍ରମେ ଜମି ଯାଏ ।

## ଚଢ଼େଇଆ ଚଢ଼େଇଆଣୀ ନାଚର ଗୀତ

ଚଢ଼େଇଆ ଉଚ୍ଚ କଣ୍ଠରେ ଗୀତ ଆରମ୍ଭ କରିଦିଏ । ଗୀତ ଗାଇଲାବେଳେ ହାତ ହଲାଇ, ପାଦରେ ତାଳ ଦେଇ ନାଚୁଥାଏ । ସେ ଚଢ଼େଇଆଣୀ ଆଡ଼କୁ ଏକ ନଜରରେ ଅନେଇ ଥାଏ । ଆଖି ଦୁଇଟା କଥା କହୁଥାଏ । ସେ ଗୀତ ଗାଇ ଚଢେଇଆଣୀର ମନ ମୋହିବାକୁ ଚେଷ୍ଟା କରୁଥାଏ । ତା ଛଇଛଟକରେ ମରଦ ପଣିଆ ଝଲି ଉଠୁଥାଏ ।

ଚଢ଼େଇଆଣୀ ବି ଆଗେରକ । ସେ ସେହି ଗୀତରେ ହିଁ ଚଢେଇଆକୁ ପ୍ରଶ୍ନ ପଚାରେ ଓ ଉତ୍ତର ଦିଏ । ଗୀତ ଗାଇଲା ବେଳେ ସେ ବି ଆଗକୁ ପଛକୁ ପାଦ ପକାଇ ନାଚୁଥାଏ । ଅଙ୍ଗ ଭଙ୍ଗୀରେ ଅନେକ ଅଜୁହା ଭାବ ପ୍ରକାଶ କରୁଥାଏ । ସେ

ଜଣାଇବାକୁ ଗୁହେଁ, ସୃଷ୍ଟିରେ ତା' ପରି ନାରୀ ଆଉ କେହି ନାହିଁ । ଇସାରା ଦେଇ ଯେ କୌଣସି ମରଦକୁ ପୋଷ ମନାଇ ପାରିବ । ତା' ପାଇଁ ବଡ କଥା କିଛି ନାହିଁ । ତା ଦେହରେ ମୁହଁରେ ବଣୁଆ ରୂପ ଖୁନ୍ଦି ହୋଇଥାଏ ।

ଚଢ଼େଇଆଣୀର ନାଚ ଦେଖି, ଗୀତ ଶୁଣି କେବଳ ଚଢ଼େଇଆ ନୁହେଁ, ଦେଖଣାହାରୀମାନେ ବି ବିହ୍ୱଳ ହୋଇ ଯାଆନ୍ତି ।

ପଲ୍ଲୀର ନବ ଯୁବକ, ନବ ଯୁବତୀମାନେ ଖୁସିରେ କୁରୁଳି ଉଠନ୍ତି ।

ସତେ ଅବା ଚଢେଇଆ ଚଢ଼େଇଆଣୀ ପଲ୍ଲୀ ଜୀବନକୁ ହସେଇ ମତେଇ ସରସ ସୁନ୍ଦର କରିବାକୁ ପଣ କରିଥାନ୍ତି । ଦେଖଣାହାରୀଙ୍କୁ ଖୁସି କରାଇ ପାରିଲେ ଅଧିକ ଧାନ, ଚାଉଳ, ମୁଗ, ବିରି, ପଇସା ମିଳେ । ଏ ସୁଯୋଗ ଛାଡ଼େ କିଏ ?



ଚଢେଇଆ ଗାଏ—

"ନଈକି ନ ଯାଇ ଡରେ
ଅଣ୍ଟିଆ କମ୍ବୀର ଘାଲି ପଡ଼ୁଛି ଲୋ
ଲେଉଟିଆ ଶାଗ ମୂଳେ ।

× ×

ମୋଓଟ ମୋଟଇ ଏ ଦୁହେଁ ମୋଟ ଲୋ
ମୋଟଡ ନଈର ନାଆ
ଆହୁର ଯେବେ ତୁ ମୋଟ ପଚୁରଲୁ
କୁମ୍ଭାର ସାହ୍ନର ଉହ୍ନ!
ଚଢେଇଆଣୀ ଲୋ । ୧ ।



ଚଢ଼େଇଆଣୀ ଗାଏ—

ମୋତେ ଗୃର ଛାଡ଼ି କହିଲୁ ନାଗର
ତୁ ମୋର ଜୀବନ ଧନ
ସବୁ ଗୃତ ଛାଡ଼ି ଯେବେ କହିବୁରେ
ଯାଚି ଭୁଂଜାଇବି ପାନ ।

ଚଢ଼େଇଆ ଉତ୍ତର ଦିଏ—

"ସଅରୁ ସଅରୁ ଏ ଦୁହେଁ ସରୁଲୋ
ସରୁ ମହାନଦୀ ବାଲି
ଆହୁର ଯେତେବେଡ଼ୁ ସରୁ ପଚ୍ଚରିଲୁ
ଚଢେଇଆଣୀ ଲୋ
ତୋର ଦେହ ଚନାମାଳ । ୨ ।

× × ×

ରଅଙ୍ଗ ରଙ୍ଗଣୀ ଏ ଦୁହେଁ ରଙ୍ଗଲୋ
ରଙ୍ଗତ ଫୁଲ ମନ୍ଦାର
ଆହୁର ଯେବେତୁ ରଙ୍ଗ ପଚ୍ଚରିଲୁ
ଚଢେଇଆଣୀ ଲୋ
ତୋହର ମଥା ସିନ୍ଦୁର । ୩ ।

ଚଢ଼େଇଆଣୀ ପ୍ରଶ୍ନ ପଚ୍ଚରେ—

ରଙ୍ଗ ଚୁଡି ଛାନ୍ଦ କହିଲୁ ନାଗର
ତୁ ମୋର ଜୀବନ ଧନ
ଧଳା ଚୁଡି ଛାନ୍ଦ ଯେବେ କହିବୁରେ
ଯାଚି ଦେବି ଯଉବନ ।

ଚଢ଼େଇଆ ଉତ୍ତର ଦେଇ ଗାଏ—

ଧୋଅବ ଧୋବଲୀ ଏ ଦୁହେଁ ଧୋବଲୋ
ଧୋବ ତ ରାଜାଙ୍କ ହଂସ
ଆହୁର ଯେବେ ତୁ ଧୋବ ପଚ୍ଚରିଲୁ
ଚଢେଇଆଣୀ ଲୋ
ତୋହର ପିନ୍ଧିଲା ବାସ । ୪ ।

ଏହାପରେ ଖୁବଟରେ ଗୀତରେ ପ୍ରଶ୍ନ ଉତ୍ତର ଚାଲେ ।

ପ୍ରଶ୍ନ ଶୁଣି ଦେଖଣାହାରୀମାନେ ଯେପରି ତାଳି ବଜାନ୍ତି, ଉତ୍ତର ଶୁଣି ସେହିପରି ତାଳି ବଜାନ୍ତି ।

ଗୀତରେ ଗୀତରେ ଚଢେଇଆ ଚଢେଇଆଣୀ ସେମାନଙ୍କ ସମାଜର ରୀତିନୀତି କଥା ବଖାଣି ହୁଅନ୍ତି । ପରିବାରର କଥା ବି ପଡ଼େ । ~~ତାପରେ~~ ତାପରେ ବ୍ୟକ୍ତିଗତ ବିବାହ ଜୀବନର ବହୁ କଥା ଆଲୋଚନା ହୁଏ ।

ଚଢେଇଆ ଚଢେଇଆଣୀ ପଲ୍ଲୀର ଜନଜୀବନକୁ ପ୍ରଚୁର ଆନନ୍ଦ ଦିଅନ୍ତି । ତାପରେ ମେଲାଣି ଗୀତ ଗାଇ ବକ୍‌ସିସ୍ ନେଇ ନିଜ କୁଟୀରକୁ ବା ବେଳଥିଲେ, ଆଉ ଏକ ଗାଁକୁ ଚାଲିଯାନ୍ତି ।

( ଆଉ ପ୍ରକାରେ ଚଢେଇଆ ଚଢେଇଆଣୀ ନାଚ )

ଓଡ଼ିଶାର କେତେକ ଗଡ଼ଜାତ ଅଞ୍ଚଳରେ ଆଉ ଏକ ଧରଣର ଚଢେଇଆ : ଚଢେଇଆଣୀ ନାଚ ଦେଖିବାକୁ ମିଳେ । ସମ୍ବଲପୁର ଓ ବଲାଙ୍ଗୀର ପାଟଣା ଅଞ୍ଚଳର ଗାଁମାନଙ୍କରେ ଏହାର ଆଦର ଅଧିକ ।

ଏଥିରେ ଶବର ଚଢ଼େଇ ହୋଇ ବାହାରେ ଓ ଶବରୁଣୀ ମାଈ ଚଢ଼େଇ ହୋଇ ବାହାରେ । ସେମାନେ ନିଜ ନିଜର ପରିଚୟ ଦେଇ ଗୀତ ଗାଆନ୍ତି । ତାପରେ ଚଢ଼େଇମାନଙ୍କ ପରି ନାଚନ୍ତି ।

ଏମାନଙ୍କ ଗୀତରେ ଚଢ଼େଇ ଜୀବନର ସୁଖ ଦୁଃଖ, ଭଲ ମନ୍ଦ, ହସ ଖୁସି କଥା ଥାଏ । ଚଢ଼େଇ ଜୀବନ କିପରି ହେଲା,

କାହିଁକି ହେଲା ଏସବୁ କଥା କୁହାଯାଏ । ତାପରେ ଚଢ଼େଇ-ମାନଙ୍କ ଜୀବନ ଯାପନଠାରୁ ବିବାହ, ପ୍ରେମ ଆଦି ସବୁ ବିଷୟ ବର୍ଣ୍ଣନା କରାଯାଇଥାଏ । ଏହା 'ନୃସିଂହ ପୁରାଣ' ପୋଥିର ବର୍ଣ୍ଣନା ପର ।

ଖାଲି ସେତିକି ନୁହେଁ, ନାଚ ଓ ଗୀତକୁ ଆହୁରି ସରସ କରିବାପାଇଁ ଅଲଗା ଅଲଗା ପୁରାଣ ଓ ଲୋକ କଥାରୁ ବିଭିନ୍ନ ବିଷୟ ଅଣା ଯାଇଥାଏ ।

ଏ ପ୍ରକାର ନାଚରେ ମାତ୍ର ଦୁଇଜଣ ଲୋକ ଭାଗ ନେଇଥାନ୍ତି । ଗୋଟିଏ ଢୋଲିଆ (ଢୋଲ ବାଦକ)ରେ କାମ ଚଳେ । ତେଣୁ ଖର୍ଚ୍ଚ ଖୁବ୍ କମ୍ ହୁଏ । ଗାଁମାନଙ୍କରେ ଏହାର ଆଦର ବଢ଼ି ଚାଲିଛି ।



# ପରଜ ସଉରା ପରଜସଉରୁଣୀ ନାଚ

ଓଡ଼ିଶାରେ ଶବର, ସଉରା, ସହରା ବୋଲିଉଥିବା ଆଦିବାସୀ ଗୋଷ୍ଠୀର ଲୋକ ଅଛନ୍ତି । ଏମାନେ ସମସ୍ତେ ଶବର ଗୋଷ୍ଠୀର ।



ପରଜ ସଉରାମାନେ ଶବରମାନଙ୍କ ପରି ବନ ଜଙ୍ଗଲରେ ରହନ୍ତି । ପଶୁପକ୍ଷୀ ଶିକାର କରି, ଫଳମୂଳ ଖାଇ ଚଳନ୍ତି ।

ବେଳେ ବେଳେ ଗାଁ ଗହଳକୁ ଆସି ଏମାନେ ନାଚ କରନ୍ତି । ପରଜ ସଉରା ସଙ୍ଗରେ ପରଜ ସଉରୁଣୀ ବି ନାଚେ ।

## ବେଶ ଭୂଷଣ

ବନବାସୀ ପଦ୍ର ସଉରା ଲେଙ୍ଗୁଟି ମାରିଥାଏ । ମୁଣ୍ଡରେ ଛିଟକନାର ପାଗ ଭିଡ଼ିଥାଏ । ପାଗରେ ପକ୍ଷୀର ପର ଓ ଫୁଲ ପଦ୍ର ସକାଇ ଥାଏ । ହାତରେ ବରଛା, ଧନୁଶର ଧରି ନାଚେ ।

ପଦ୍ର ସଉରା ପରେ ପଦ୍ର ସଉରୁଣୀ ନାଚ ନାଚି ଆସିଥାଏ । ଅଣ୍ଟାରେ ଅଣ୍ଟା ଓସାରିଆ ଶାଢ଼ୀ ଥାଏ । ବେକରେ ବଣୁଆ ଫୁଲ ଓ ଗୁଞ୍ଜମାଳ ଲଗାଇ ଥାଏ । ତେଲ ଜର ଜର ଖୋସାରେ କେତେ ଜାତି ପକ୍ଷୀର ପର ଖୋସିଥାଏ । ଅଣ୍ଟାରେ କଉଡ଼ିମାଳ ଓ ପାଦରେ ଘୁଙ୍ଗୁର ଲଗାଇ ସେ ନାଚେ ।

ହାତରେ ବାଉଁଶ ପାଚିଆଟିଏ ଧରି ପଦ୍ର ସଉରୁଣୀ ହଲି ଦୋହଲି ନାଚେ ।

## ନାଚ

ଢୁଲିଆ (ଢୋଲ ବାଦକ)ର ଢୋଲ ବାଜା ଶୁଣି ଗାଁ ଲୋକେ ଜମା ହୋଇଯାନ୍ତି । ଢୁଲିଆ ପଦ୍ରସଉରା ଓ ସଉରୁଣୀକୁ ନଚାଏ ।

ଢୁଲିଆର ଢୋଲ ବାଜା ସଙ୍ଗେ ସମାନ ତାଳ ରଖି ସଉରା ସଉରୁଣୀ ଆଗକୁ ପାଦ ପକାଇ ହଲି ଦୋହଲି ନାଚନ୍ତି ।

ବାଜା ଅଧିକ ଜୋରରେ ବାଜିଲେ, ଏମାନଙ୍କ ପାଦ ମଧ୍ଯ ଚଞ୍ଚଳ ହୁଏ । ସେମାନେ ଡେଇଁ ଡେଇଁ ନାଚିବା ଆରମ୍ଭ କରି ଦିଅନ୍ତି । ଡେଇଁ ଡେଇଁ ବା ଘିରି ଘିରି ହୋଇ ଘୁରି ବୁଲିଲା ବେଳେ, ଦର୍ଶକମାନେ ଖୁସିରେ କୁହାଟ ଛାଡନ୍ତି ।

ଦେଖଣାହାରୀମାନଙ୍କ ବାହ୍ୱା ବାହ୍ୱା ପଦ ଓ ତାଳିମାଡ଼ ଦେଖିଲେ, ସଉରା ସଉରୁଣୀ କୋଟିନିଧି ପାଇଲା ପରି ମଣନ୍ତି । ସେମାନଙ୍କ ମୁହଁରୁ ମହକା ମହକା ହସ ଉଚ୍ଛୁଳି ପଡ଼େ । ଅଧିକ ବକ୍‌ସିସ ପାଇବା ଆଶାରେ ସେମାନେ ଶେଷ ଦମ୍ ନେଇ ନାଚନ୍ତି ।

ଢୁଲିଆ ଅଙ୍କ ଗଲେ ପନ୍ଦ୍ରସଉରା ଘୁଡ଼ୁକି ବଜାଇ ପନ୍ଦ୍ର ସଉରୁଣୀକୁ ନଚାଏ ଓ ନାଚେ ।

ବେଳେବେଳେ ଢୁଲିଆ ନ ଥାଇ ଘୁଡ଼ୁକି ବାଜା ସଙ୍ଗରେ ସଉରା ସଉରୁଣୀ ନାଚନ୍ତି । ପନ୍ଦ୍ର ସଉରା ଗୀତ ଗାଇ ଘୁଡ଼ୁକି ବଜାଏ । ସଉରୁଣୀ ନାଚେ । ସଉରା ନାୟକ, ସଉରୁଣୀ ନାୟିକା ।

ଢୁଲିଆ ଢୋଲ ପିଟେ । ପନ୍ଦ୍ର ସଉରା ପ୍ରଥମେ ନାଚ ନାଚ ଢୁଲିଆ ପାଖକୁ ଆସେ । ସେ ଗୀତରେ ନିଜର ପରିଚୟ ଦିଏ । ତା ପରେ କଅଁଳ ମଧୁର କଣ୍ଠରେ ଲହରାଇ ଲହରାଇ ପନ୍ଦ୍ର ସଉରୁଣୀକୁ ଡାକେ ।

ସଉରାର ଡାକ ଶୁଣି ଧୀରେ ଧୀରେ ନାଚି ନାଚି ପନ୍ଦ୍ର ସଉରୁଣୀ ଆସେ ।

ସଉରା ସଉରୁଣୀ ଭେଟ ହୁଅନ୍ତି । ଜଣେ ଜଣକୁ କଣେଇ କଣେଇ ଚାହେଁ । ସେ ଚାହାଣୀରୁ ମହୁ ଝରୁଥାଏ । ଓଠରେ ହସର ଫୁଲ ଫୁଟୁଥାଏ । ମୁହଁରୁ ଭଲ ପାଇବାର ଭାଷା ଝିରି ଝିରି ହୋଇ ଝରି ପଡ଼ୁଥାଏ । ମନେ ହୁଏ, ସତେ ଅବା ଗାଁ ଦାଣ୍ଡରେ ଆଉ କେହି ନାହିଁ । କେବଳ ଅଛନ୍ତି ସଉରା ସଉରଣୀ । ସେ ଦୁହେଁ ଭାବ କରୁଛନ୍ତି ।

ସେମାନଙ୍କ ଚାହିଁବାର ଭଙ୍ଗୀ ଦେଖିଲେ ମନ ପୁଲକି ଉଠେ । ଏମିତି ଲାଗେ, ଜୀବନରେ ଦୁଃଖ ନାହିଁ । ଭାବନା ନାହିଁ । ସବୁ ସରସ, ସୁନ୍ଦର, ମଧୁର ।

ପନ୍ଦ ସଉର୍ ସଉରଣୀ ପାଖକୁ ଲଗିଯାଏ । ସେ ସଉରଣୀର ଓଠ ଧରେ । ମୁହଁରେ ହାତ ବୁଲାଏ ।

ଏ ସବୁ ଅଭିନୟ ଦେଖି ଦେଖଣାହାରୀମାନେ ଖୁସି ହୁଅନ୍ତି ।



ଏହାପରେ ସଉର୍ ସଉରୁଣୀ ମିଶି ଶିବ ଦେବତାଙ୍କୁ ଯୁହାର ହୁଅନ୍ତି । ହାତଯୋଡ଼ି ଜଣାଣ ଗାଆନ୍ତି । ଗାଁ ମାଁର ଶୁଭ ପାଇଁ ଗୁହାରୀ କରନ୍ତି ।

ପନ୍ଦ ସଉର୍ ସଉରୁଣୀ ଶିବଙ୍କ ଭକ୍ତ । ଶିବ ସେମାନଙ୍କ ଦେବତା । ଶିବଙ୍କୁ ସେମାନେ ଖୁବ୍ ମାନନ୍ତି ।

ଶିବଙ୍କୁ ଗୁହାରୀ କରିସାରି ସେମାନେ ଅସଲ ନାଚ ଗୀତ ଆରମ୍ଭ କରନ୍ତି ।

ପର୍ ସଉର୍ ସଉରୁଣୀର ହାତ ଧର ଗାଏ—

"ମାଲୀ ସାହିବାଟେ ଗ୍ଲଲଅସିଲ ଲୋ
ମାଲ୍ଣୀ ଗୁନ୍ଥୁଛି ମାଲ ।
ମାଲ୍ଣୀ ବେକରେ ମନ୍ଦାରମାଲ ଲୋ
ଦହେ ବୁହ୍ନିଯାଏ ଝାଲ ।
ମାଲି ଦେଉଛି ଗାଲି
ଶାଲୀ କାହିଁ ଯାଇଥିଲୁ ବୁଲିରେ···
ତୋର ମୁହଁରେ ଲାଗିଛେ ବାଲି ।"

ଏହିପର ଅନେକ ଗୀତ । ଏ ଗୀତର ଭାବ ଗଭୀର ।

ପର୍ ସଉରୁଣୀ ସଉର୍ ଗାଉଥିବା ଗୀତର ଭାବ ବୁଝେ । ଭାବକୁ ଯୋଖି ଗୀତରେ ଉତ୍ତର ଦଏ ।

ଗୀତ ପରେ ବାଜା ବାଜେ । ବାଜା ବାଜଲେ ଦୁହେଁ ନାଚନ୍ତି । ପୁଣି ଗୀତ ଗ୍ଲେ । ଗୀତବେଳେ ଧୀରେ ଧୀରେ ବାଜା ବାଜୁଥାଏ ।

ସଉରୁଣୀ କ ଛାଡ଼ିବା ସ୍ତ୍ରୀ ? ମୁହଁ ବଙ୍କେଇ, ହାତ ହଲାଇ ଗାଏ—

ଗୀତରେ ସେମାନେ ଘରେଇ କଥା, ପରିବାର କଥା, ସମାଜର କଥା, 'ବଡ଼ବଡ଼ିଆଙ୍କ କଥା କହନ୍ତି । ବନର ଫୁଲ ଫଳ, ପଶୁପକ୍ଷୀ, ଝରଣା କଥା ବି' ପଡ଼େ ।

ଏହାପରେ ସଉରୁଣୀ ମାନଅଭିମାନ କରେ । ସବୁ କଥାରେ ସଉରକୁ ଦାୟୀ କରେ । କହେ, ମୋତେ ଛାଡ଼ି କୁଆଡ଼େ ଯିବ ନାହିଁ । ସବୁବେଳେ ମୋତେ ସଙ୍ଗରେ ନେଇ ଯାଉଥିବ ।

କୋଲକୁ ପେଲ ନାହିଁ । ଏକୁଟିଆ ରହିବ କେମିତ ? ଡ଼ର ଲାଗିବ ।

ପଏ ସଉରା ସଉରୁଣୀର ଅଭିମାନ ଭାଙ୍ଗିବାକୁ ଗେଲବସର କଥା କହେ । ଗୀତରେ ସେ ସଉରୁଣୀକୁ ଖୁବ୍ ଟେକେ । କହେ, ତୋ' ପରି ନାରୀ ଦୁନିଆରେ ନାହିଁ । ତୁ ସରଗର ପରୀ । ତୁ ଜୀବନ ଧନ । ତୁ ମୋର ସବୁ । ତୋତେ ଛାଡ଼ି କୁଆଡ଼େ ହେଲେ ଯିବି ନାହିଁ ।

ପଏ ସଉରାର ଗୀତ ଶୁଣି ସଉରୁଣୀ ଖୁସି ହୁଏ । ଅଭିମାନ ଦୂର କରି ଫିକ୍‌କରି ହସି ଦିଏ ।

ଏହାପରେ ମଜା କଥାଟିଏ ଘଟେ ।

ସଉରା ସଉରୁଣୀ ସୁଖ ଦୁଃଖ ହେଉ ହେଉ କାଳକଟି ବସନ୍ତ । ଘରର ଅଭାବ କଥା ପଡ଼େ । ସଉରୁଣୀ ଅଭାବପାଇଁ ସଉରାକୁ ଦୋଷ ଦିଏ । କହେ, ତୋ ହାତ ଧରି ହିନସ୍ତା ହେଲି । ଆଉ କାହାକୁ ବାହା ହୋଇଥିଲେ ସୁଖରେ ରହିଥାନ୍ତି । ସେ ମୋତେ ରାଣୀ ପରି ରଖିଥାନ୍ତା । ମୋ ପାଇଁ ଘର ତୋଳି ଦେଇଥାନ୍ତା ।

ଏହାଶୁଣି ପଏ ସଉରା ଭାଙ୍ଗିଯାଏ । ସେ ବି' ଛାଡ଼ିବା ଲୋକ ନୁହେଁ । କହେ, ଭୁଷ୍ଟା କାଳହାଣ୍ଡି । ତୁ ସୁନ୍ଦର ନୋହୁ । ତୁ ମୋତେ ପୁଅ ଦେଲୁ ନାହିଁ । ତୋ ହାତ ଧରି ହଟହଟା ହେଲି ।

ସଉରୁଣୀ କ ଛାଡ଼ିବା ସ୍ତ୍ରୀ ? ମୁହଁ ବଙ୍କେଇ, ହାତ ହଲାଇ ଗାଏ—

"ଫୁ ପ୍ଲାଲ୍ ପେଲ୍ ହା
ଖାଲୁଆ ଆଏଁ ଖ୍
ଝିକେଇ ହେଉଛୁ କେତେ—

ଖୁଁଡ଼ୁଆ ଖେନାକେ
କାହେ ନାଇଁ ଗଛୁ ଚଲ
ଧର ପଲାଇଲ୍ ମତେ ।"

ଏହିପର କେତେ କଣ ! ଟିକକ ଆଗରର ହସ ଖୁସି କୁଆଡ଼େ ଉଭେଇ ଯାଏ । ଦୁହେଁ ଦୁହିଙ୍କୁ ଦେଖି ଜମଜମ ହୁଅନ୍ତି । ସେମାନଙ୍କ ଆଖିରେ ନିଆଁ ଜଳୁଥାଏ । ସତେ ଅବା ମାରପିଟ ହେବେ ।

ଦେଖଣାହାରୀଙ୍କ ଭିତରେ ଚହଳ ପଡ଼ିଯାଏ ।

ସାଧାରଣତଃ ଡ଼ଳିଆ ଏମାନଙ୍କ ମଝିକୁ ଆସି, ବୁଝାଇ ସୁଝାଇ କଳି ଭାଙ୍ଗେ ।

ପୁଣି ଯେଉଁ କଥାକୁ ସେଇ କଥା ।

## ସଂପର୍କ

ପନ୍ ସଉର୍ ପନ୍ ସଉରୁଣୀ ବାସ୍ତବ ଜୀବନରେ ସ୍ୱାମୀ ସ୍ତ୍ରୀ । ଏମାନେ ଜଣେ ଜଣକୁ ଭଲପାଇ ବିବାହ କରିଥାନ୍ତି । ମନ ମାନିଲା ପରେ ଏକାଠି ରହିଥାନ୍ତି । ନାଚ ଗାଇ ମଉଜ କରିବାକୁ ମନ ବଳିଲେ, ବନ ଜଙ୍ଗଲ ଛାଡ଼ି ଗାଁ ଗହଳରେ ପଶନ୍ତି । ନାଚ ଗାଇ ନିଜେ ଖୁସି ହୁଅନ୍ତି । ଦେଖଣାହାରୀଙ୍କୁ ବି ଖୁସି

କରନ୍ତି । ତାପରେ ମେଲାଣି ମାଗି ଚାଲି ଯାଆନ୍ତି । ଯିଏ ଯାହା ଦେଲା, ଖୁସି ମନରେ ନିଅନ୍ତି ।

## ପରିଚୟ

'ଦଣ୍ଡନାଟ'ର ଲେଖକ ଯୋଗ ମଲ୍ଲିକ 'ଅନାର୍ଯ୍ୟ ସଂସ୍କୃତି' ପୋଥିରୁ ଆଣି କହନ୍ତି, କୁଦାଳକ ନାମରେ ଜଣେ ଋଷି ଥିଲେ । ସେ ଲକ୍ଷ୍ମୀଙ୍କ ଭଉଣୀ ଅଲକ୍ଷ୍ମୀଙ୍କୁ ବିବାହ କରିଥିଲେ । ସେ ଦୁହିଙ୍କ ମିଳନରୁ ପୁଅଟିଏ ଜନମ ହେଲା ।



